# କସରୀ ଘୋଡ଼ା





ଜିକି ଅନେକ ଦନ ହେଲଣି; ବୁଢ଼ାଟିଏ ଥାଏ । ତାର ତନୋଟି ପୁଅ; ସବାସାନକୁ ସମସ୍ତେ ଡାକୁଥାନ୍ତ ଓଲୁ ଇଭାନ୍ !

ବୁଢ଼ା ଅରେ ନଜ ବଲରେ ଗହମ ଗଛଗୁଡ଼ଏ ବୋଇଥାଏ । ସେଗୁଡ଼କ ଛନ ଛନଆ ହୋଇ ବଢ଼ିଲ । ହେଲେ କଣ ହେବ, କଏ କେଜାଣି କୋଉଠୁ ଆସି ତାକୁ ସବୁ ଦନ ଚକଟି ପକାଉଥାଏ ।

ବୁଢ଼ା ତେଣୁ ପୁଅମାନଙ୍କୁ କହଲ—

"ଆରେ ପିଲାଏ ! ଯାଅ କ ରାତରେ ପାଳ କର ଗହମ କିଆରୀ ଜଗ ! ତା' ହେଲେ ଯାଇ ଚୋରକୁ ଧର ପାରବା ।"







ପହିଲା ରାତରେ ବଡ଼ ପୁଅ ଚାହାଉଁଲା ଯେପରି ଜଗିବ ଲୋକ, କିନ୍ତୁ ନିଦରେ ତାର ଆଖି ମାଡ଼ି ମାଡ଼ି ପଡ଼ୁଥାଏ। ସେ ଥିର୍ କଲା ଯାଇ ପାଳଗଦା ଉପରେ ଚଢ଼ିଲା। ଆଉ ସେଇଠି ବସୁଁ ବସୁଁ ନିଘୋଡ଼ ନିଦରେ ଶୋଇପଡ଼ିଲା, ସକାଳଯାଏ।

ସେ ଘରକୁ ଫେରି ବୁଢ଼ାକୁ କହିଲା, "ରାତଯାକ ମୋ ଆଖି ପିଞ୍ଚୁଡ଼ା ପଡ଼ିନି! ଏଡ଼ିକି ହେମାଳ! ଦାନ୍ତ ମୋର ଜାଲି ମାରି ଯାଉଥାଏ। କିନ୍ତୁ କାଇଁ ଚୋରଫୋର ତ କାହାକୁ କୋଉଠି ଦେଖିଲି ନାଇଁ!"



ତହିଁ ଆର ଦିନ ରାତରେ ଜଗିବାକୁ ଗଲା ମଝିଆଁ ପୁଅ। ସେ ବି ପାଳଗଦା ଉପରେ ନିଘୋଡ଼ ନିଦରେ ଶୋଇପଡ଼ିଲା, ସକାଳ ଯାଏଁ।



ତା' ପର ଦିନ ରାତରେ ପାଳି ପଡ଼ିଲା ଓଲୁ ଇଭାନ୍‌ର; ପକେଟ୍‌ରେ ପାଉଁରୁଟିଟିଏ ପୂରେଇଲା, ଦଉଡ଼ି ଖଣ୍ଡିଏ ଧରିଲା, ବାହାରିଗଲା ବିଲକୁ। ସେଠି ଯାଇ କିଆରୀମୁଣ୍ଡରେ ବସିଲା ପଥରଟିଏ ଉପରେ। ଆଖିଦଟା ମେଲାକରି ଚାରିଆଡ଼କୁ ଚାହୁଁଥାଏ। ରୁଟିରୁ ଟିକିଏ ଟିକିଏ ପାଟିରେ ପକେଇ ଚୋବଉଥାଏ ଆଉ ଅନେଇ ରହିଥାଏ ଚୋରଟା ଆସିବ କେତେବେଳେ।



ରାତ ଅଧି ଅଧ ହେଲା। ଟପ୍ ଟପ୍ ଟପ୍!—କୋଉଠି ଥିଲା, କଦମ୍ ପକାଇ ମାଡ଼ି ଆସିଲା ଘୋଡ଼ାଟାଏ! ତା'ର କେଶରଗୁଡ଼ାକ ସୁନାର ଆଉ ରୁପାର।



ତାର ଖୁରତଳେ ଦୁଲ୍ ଦୁଲ୍ ହୋଇ କମ୍ପି ଉଠୁଥାଏ ଭୂଇଁଟା । ସୁଉ ସୁଉ ହୋଇ ନିଃଶ୍ୱାସରେ ନାକପୁଡ଼ାରୁ ବାହାରି ଆସୁଥାଏ ଧୂଆଁ, ଆଉ ହୁଉ ହୁଉ ହୋଇ ନିଆଁ ହୁଳା ଛୁଟୁଥାଏ କାନ ଭିତରୁ ।

ଘୋଡ଼ାଟା ଯାଚେଁ ଯାଚେଁ ଖାଇବାକୁ ଆରମ୍ଭ କରିଦେଲା ଗହମ ଶୀଁଷାଗୁଡ଼ିକୁ ଯେତିକି ସେ ଖାଉଥାଏ, ତାଠୁ ବେଶି ଦଳି ଚକଟି ପକାଉଥାଏ, ଭୁଷ୍ଠାକୁ ।

ଇଭାନ୍ ଘୋଡ଼ା ପାଖକୁ ସେପଟେଇ ସେପଟେଇ ଗଲା ; ଦୌଡ଼ିଟାକୁ ଗଳେଇ ଦେଲା ତା' ବେକରେ । ଖସି ପଳେଇବ ବୋଲି ଭାରି ଭିଡ଼ିଓଟାରି ହେଲା ଘୋଡ଼ାଟା; ଇଭାନ୍ କିନ୍ତୁ କୁଦାଟାଏ ମାରି ବସିପଡ଼ିଲା ତା' ପିଠିରେ; କଷିକରି ମୁଠେଇ ଧରିଲା ତା କେଶରକୁ । ସେ କି କୁଦା ମାରିଲା ଘୋଡ଼ାଟା ! ଆଗ ଗୋଡ଼ ଟେକି ପଛ ଗୋଡ଼ ଛାଟି, ଧାଇଁଲା ଖାଲି କଆରୀଟାପାକ । ହେଲେ, ଇଭାନ୍‌କୁ ଖସେଇ ପାରିଲା ନାହିଁ ପିଠିରୁ ।

ତା' ପରେ ଯାକୁଟିଲାଇ ହେଲା ଘୋଡ଼ା । "ଦେ ରେ ମତେ ଛାଡ଼ି ଦେ ରେ ଇଭାନ୍ ! ଯେତେବେଳେ ଲୋଡ଼ିବୁ ତୁ, ଆସିବି, ସାହାଯ୍ୟ କରିବି ତତେ । କଥା ଦେଉଛି ମୁଁ !"

ଇଭାନ୍ କହିଲା, 'ହଉ ହେଲା, ଛାଡ଼ିଦେବି ଯେ ! କିନ୍ତୁ ପାଇବି ପୁଣି କେମିତି ତତେ ?'

"ଦେଖ୍ ! ଆଗ ଚାଲିଆସିବୁ ଗୋଟାଏ ଖୋଲା ପଡ଼ିଆ ମଝିକୁ, ପାଟିରେ ଆଙ୍ଗୁଠି ପୂରେଇ ସ୍ୱସିଲ ବଜେଇବୁ ତିନିଥର ! ଆଉ, ତା'ପରେ, ଡାକ ମାରିବୁ



ଖୁବ୍ ବଡ଼ ପାଟିରେ—"ଆ ଆରେ କସରା ଘୋଡ଼ା   ଆ, ଶୁଣ୍ ମୋ କଥା, ମାନ୍ ! ଦେଖିବୁ, ଡାକିବା କ୍ଷଣି ମିନିଟ୍‌କରେ ଆସି ପହଞ୍ଚିଯିବି ମୁଁ ।"

ଘୋଡ଼ାଟିକୁ ଛାଡ଼ିଦେଲା ଇଭାନ୍ । ଘୋଡ଼ା ବି କଥା ଦେଇ ଗଲା, ଆଉ କେବେ-ହେଲେ ଆସି ଗହମ ଖାଇବ ନାହିଁ କି ମାଡ଼ିଚକଟି ଦେବ ନାହିଁ ଗହମ କିଆରୀକୁ ।

ତହିଁ ଆରଦିନ ସକାଳୁ ଘରକୁ ଫେରିଲା ଇଭାନ୍ ।

ଭାଇମାନେ ପଚାରିଲେ, "କିରେ, କଣ କାହାକୁ ଦେଖିଲୁ ସେଠି ?"

ଇଭାନ୍ କହିଲା, "ସୁନା ଆଉ, ରୁପାର ଘୋଡ଼ାଟିଏ ! ଧରିଲି ତାକୁ ।"

"କାହିଁ କେଉଁଠି ସେଇଟା ?"

"ଆରେ ବାଃ ! ସେ ତ କଥା ଦେଲା, ଆଉ କେବେ ଗହମ କିଆରୀ ମାଡ଼ିବ ନାହିଁ । ତେଣୁ, ଛାଡ଼ିଦେଲି ତାକୁ !"

ଇଭାନ୍‌ର ଗୋଟିଏ ହେଲେ କଥାରେ ବିଶ୍ୱାସ କଲେ ନାହିଁ ଭାଇମାନେ, ଓଲଟି ହସି ଉଠିଲେ ହୋ ହୋ ହୋଇ !

କିନ୍ତୁ ସେଇ ରାତିରୁ ଆଉ କେହି ଚକଟିଲେ ନାହିଁ ଗହମ କିଆରୀକୁ ।

ଏଇ ଘଟଣା ପରେ ସେ ଦେଶର ରାଜା ଛୋଟ ବଡ଼ ସବୁ ସହରକୁ ଆଉ ଗାଆଁ-ଗଣ୍ଡାକୁ ଦୂତ ପଠେଇ ଢେଣ୍ଡୁରା ଦିଆଇଲେ—





"ଯିଏ ଯେଉଁଠି ଅଛ ସବୁ, ସାମନ୍ତ, ଜମିଦାର, ବଣିକବେପାରୀ, ସାଧୁ, ସରଳ, ପ୍ରଜାପାଳକ ଆସ ! ରାଜାଝିଅ ସୁନ୍ଦରୀ ଏଲନାକୁ ଦେଖିବା ଲାଗି ଆସ ! ଉଆସର ଉଚ୍ଚ ଜଗତ ଉପରେ ଝରକା ପାଖରେ ବସିଥିବ ସେ ! ଯିଏ ନିଜ ଘୋଡ଼ାରେ ଚଢ଼ି ଡିଆଁ ମାରି ତା ପାଖରେ ପହଞ୍ଚି ପାରିବ, ଆଉ ତା ଆଙ୍ଗୁଠିରୁ ଅମୂଲ୍ୟ ମୁଦିଟିକୁ ଆଣି ପାରିବ, ସିଏ ତାକୁ ବାହା ହେବ ।



ଦିନ ଆସିଲା ରାଜାଝିଅକୁ ଦେଖିବା ପାଇଁ ନଅରକୁ ଯିବାକୁ ହେବ । ବଡ଼ ଭାଇ ଦୁହେଁ ସଜବାଜ ହେଲେ । ସେମାନେ ତ ଆଉ ନିଜ ନିଜର ଭାଗ୍ୟ ପରୀକ୍ଷା ପାଇଁ ବାହାରି ନ ଥାନ୍ତି; ସେମାନେ ଯାଉଥାନ୍ତି ଆଉ ସମସ୍ତଙ୍କୁ ସେଠି ଦେଖିବେ ବୋଲି । ଓଲୁ ଇଭାନ୍ କାକୁତିମିନତି ହୋଇ କହିଲା—

"ଭାଇ ! ଧଡ଼ିଆ ମଡ଼ିଆ ପୁରୁଣାକାଳିଆ ହେଉ ପଛେ, ଘୋଡ଼ାଟିଏ ମତେ ଦିଅନ୍ତ କି, ମୁଁ ବି ଟିକେ ସୁନ୍ଦରୀ ଏଲନାକୁ ଦେଖି ଆସନ୍ତ ।"

ଭାଇ ଦୁହେଁ କହି ଉଠିଲେ, —"ଶୁଣ ! କଥା ଶୁଣ ଓଲୁଟାର ! ତୁ କଣ ଆମକୁ ଲୋକହସା କରେଇବୁ କିରେ ? ଯା' ବସ ଯା ନିଆଁ ପାଖରେ ! ପାଉଁଶ କାଢୁଥା ଚୁଲିରୁ ।"

ଭାଇ ଦୁହେଁ ଚାଲିଗଲେ । ଇଭାନ୍ ଭାଉଜମାନଙ୍କୁ କହିଲା--"ଦିଅ, ମତେ ଟୋକେଇଟାଏ ଦିଅ ! ଯାଏଁ, ବଣରୁ ଛତୁ କିଛି ତୋଳି ଆଣେ !"

ଇଭାନ୍ ଟୋକେଇଟିଏ ନେଲା । ବଣକୁ ଯିବା ବାହାନାରେ ବାହାରିଗଲା ପଦାକୁ ।

ଖୋଲା ପଡ଼ିଆରେ ପହଞ୍ଚି ଗୋଟାଏ ବୁଦାମୂଳକୁ ଫିଙ୍ଗିଦେଲା ଟୋକେଇକୁ । ପାଟିରେ ଆଙ୍ଗୁଠି ଦେଇ ସୁସିର ବଜେଇ ବଡ଼ ପାଟିରେ ଡାକ ଛାଡ଼ିଲା--"ଆ, ଆ ଆରେ ଜସର୍ ଘୋଡ଼ା ଆ ! ଆ ! ଶୁଣ୍ ମୋ କଥା, ମାନ୍ !"

ଦୁଲ୍ ଦୁଲ୍ ହୋଇ ଦୁଲ୍‌କି ଉଠିଲା ଭୂଇଁଟା । କଦମ୍ ପକେଇ ଚମ୍‌କି ଆସିଲା ଘୋଡ଼ା ! ସୁଉ ସୁଉ ହୋଇ ନିଃଶ୍ୱାସରେ ତାର ନାକପୁଡ଼ାରୁ ବାହାରୁଥାଏ ଧୂଆଁ, ଆଉ ହୁଉ ହୁଉ ହୋଇ ନିଆଁହୁଳା ଛୁଟି ଆସୁଥାଏ କାନ ଭିତରୁ ! ଦୁମ୍‌କିନି ଆସି ଛିଡ଼ା ହୋଇ ପଡ଼ିଲା ବାଟଟାରେ, ଇଭାନ୍ ସାମନାରେ ଠିକ୍ । ପଚାରିଲା—"କଣ ଚାହୁଁ ତୁ ?"

ଇଭାନ୍ ତାକୁ ସବୁ କଥା କହିଗଲା ।



"ଏଇଆ ତ ! ବେଶ୍ ତେବେ ! ଗୁରୁଣ୍ଡି କର ପଶ୍ ମୋ ଡାହାଣ କାନରେ— ଆଉ ବାଆଁ କାନ ବାଟେ ବାହାର ଯା' ପଦାକୁ !"





ଇଭାନ୍ ଗୁରୁଣ୍ଡି ଗୁରୁଣ୍ଡି ତା' ଡାହାଣ କାନରେ ପଶିଲା ଆଉ ବାଆଁ କାନ ବାଟେ ବାହାରି ପଡ଼ଲା ପଦାକୁ। ଦେଖୁଁ ଦେଖୁଁ ରାଜକୁମାର ଭଳି ଏମିତି ଅପୂର୍ବ ସୁନ୍ଦର ଯୁବାଟିଏ ପାଲଟିଗଲା ଯେ ତା'ପରି ସେମିତି ଆଉ କେହି କେବେ ଦେଖି ନ ଥିବ କି ଶୁଣି ନ ଥିବ କୋଉଠି ।

କସରା ଘୋଡ଼ା ଉପରେ ଚଢ଼ିଯାଇ ତାକୁ ଝପ୍‌ଟେଇ ଦେଲା ସହର ଆଡ଼କୁ! ବାଟରେ ଭାଇମାନଙ୍କୁ ଟପିଗଲା ସେ; ଧୂଳି ଉଡ଼ାଇ ଚାଲିଗଲା ତାଙ୍କୁ ପଛରେ ପକେଇ ।



ଇଭାନ୍ ଘୋଡ଼ାରେ ଚଢ଼ି ପହଞ୍ଚିଗଲା ଯାଇ ରାଜନଅର ସାମ୍ନା ଛକରେ । ଲୋକେ ଆଟପଟାଳ ହଉଥାନ୍ତି ସେଠି । ଜଗତ ଉପରେ ଝରକା ପାଖରେ ବସିଥାଏ ରାଜଝିଅ ଏଲେନା । ଆଙ୍ଗୁଠିରେ ତାର ଝଟକୁ ଥାଏ ଅମୂଲ୍ୟ ରତ୍ନ ମୁଦିଟିଏ । ରାଇଜଯାକରେ ସବୁଠୁ ବଳି ସୁନ୍ଦରୀ ଝିଅ ସେ ! ସମସ୍ତେ ତାକୁ ଅନେଇ ରହୁଥାନ୍ତି ଆବାକାବା ହୋଇ କେହି କିନ୍ତୁ ସାହାସ କରୁ ନ ଥାନ୍ତି ଡେଇଁପଡ଼ି ତାକୁ ଛୁଇଁବାକୁ । ସମସ୍ତଙ୍କର ଡର—କାଳେ ହାଡ଼ଗୋଡ଼ ଭାଙ୍ଗି ଚୂନା ହୋଇଯିବ !



କସବ୍ ଘୋଡ଼ାର କଂକାଳକୁ ଗୋଇଠିରେ କେଞ୍ଚିଦେଲା ଇଭାନ୍ ! ନାକଟା ଫୁଲେଇ ଘୋଡ଼ାଟା ଗଅଁକିନା ହେଲା । ହୁଁ ହୁଁ ରଡ଼ ଛାଡ଼ି କୁଦାଟାଏ ମାରିଦେଲା ଉପର୍‌କୁ । କିନ୍ତୁ ତାର ମୁଣ୍ଡଟା ଯାଇ ବାଜିଲା ରାଜଝିଅର ଝରକା ତଳେ, ତୃତୀୟ ବେଢ଼ ପଟାରେ ଠିକ୍ !

ସମସ୍ତେ ତାଟକା ହୋଇଗଲେ । ଝଟ୍‌କିନା କସବ୍ ଘୋଡ଼ାକୁ ବୁଲେଇ ଦେଲା ଆଉ କଦମ୍ ଛୁଟେଇ ଚମ୍ପଟ ଦେଲା ଇଭାନ୍ !



'ସେ କିଏ ?' 'ସେ କିଏ ?'—ଯିଏ ଯୋଉଠି ଥିଲେ, ପାଟି କରି ଉଠିଲେ ସମସ୍ତେ । କୁଆଡ଼େ ଉଭେଇ ଗଲା ଇଭାନ୍ । ଅନେଇଥିଲେ ସମସ୍ତେ । ଘୋଡ଼ାରେ ଚଢ଼ି ଉପରକୁ ଉଠୁଥିଲା ସେ, କିନ୍ତୁ କାହାରି ଆଖିରେ ପଡ଼ିଲା ନାହିଁ କୋଉ ବାଟରେ ସେ ପଳାଇଗଲା କେମିତି !



ସହରରୁ ବାହାର ଖୋଲା ପଡ଼ିଆରେ ଯାଇ ପହଞ୍ଚିଲା ଇଭାନ୍। ଘୋଡ଼ାରୁ ଓହ୍ଲାଇ ପଡ଼ି ଘୁରୁଣ୍ଡି ଘୁରୁଣ୍ଡି ତା' ବାଆଁ କାନରେ ପଶି ଡାହାଣ କାନ ବାଟେ ବାହାରିଗଲା ପଦାକୁ; ପୁଣି ପାଲଟିଗଲା ଯୋଉ ଓଲୁ ଇଭାନ୍‌କୁ ସେଇ ଓଲୁ ଇଭାନ୍! କସରୀ ଘୋଡ଼ାକୁ ବିଦା କରିଦେଇ ମୁହାଁଇଲା ଘରକୁ, ଆଉ ସେଠି ଯାଇ ଚୁଲି ପାଖରେ ଚୁପ୍‌ଚାପ ବସି ଅପେକ୍ଷା କଲା ଭାଇମାନଙ୍କୁ।

ଭାଇମାନେ ଫେରିଲେ, ସହରରେ ଯାହା ସବୁ ଦେଖିଥିଲେ ତାହା ସବୁ ଗୋଟି ଗୋଟି କରି କହିଲେ ଭାରିଯାମାନଙ୍କୁ—"ଆଲୋ! ତମେ ସବୁ ଦେଖିଥାନ୍ତ କି, କେଡ଼େ ବଢ଼ିଆ ଟୋକାଟାଏ ଆସିଥିଲା ରାଜାଘରକୁ! ଆଗରୁ କେବେ କୋଉଠି ତା'ପରିକା ଜଣେ ଦେଖି ନ ଥିଲୁଁ ମ। ସେ କୁଦାଟାଏ ମାରି ରାଜଝିଅ ଝରକାତଳ ତନବେଡ଼ ପଟାଯାଏ ଉଠିଗଲା!"

ଇଭାନ୍ କିଆଁ ଉହ୍ଲେଇ ପାଖରେ ବସି ହସୁଥାଏ। କହିଲା—"ଭାଇ! ଠିକ୍ କହୁଚ ତ? ମତେ ଆଉ ଦେଖିନ ତ ସେଠି?"

"ଦୁଃର୍! ତୋ ଭଳି ବୋକାଟା ସେଠିକି କମିତ ଯାଇପାରେ, ହଇରେ? ବସ୍, ଚୁପ୍‌ଚାପ୍ ବସ୍ ସେଠି। ମାଛି ଧର ବସି।"

ତହିଁଆରଦିନ ବଡ଼ଭାଇ ଦୁହେଁ ପୁଣି ବାହାରିଗଲେ ସହରକୁ! ଇଭାନ୍ ଏଣେ ଟୋକେଇଟିଏ ନେଇ ଛତୁ ତୋଳିବା ପାଇଁ ଚାଲିଲା ବଣକୁ।

ଖୋଲା ପଡ଼ିଆରେ ପହଞ୍ଚି ଟୋକେଇଟିକୁ ଫିଙ୍ଗିଦେଲା ଗୋଟାଏ ବୁଦାମୂଳକୁ। ମୁହଁରେ ଆଙ୍ଗୁଠି ଦେଇ ସୁସିର ବଜେଇ ବଡ଼ ପାଟିରେ ଡାକ ଛାଡ଼ିଲା, "ଆ, ଆଆ ରେ କସରୀ ଘୋଡ଼ା, ଆ, ଆ! ଶୁଣ୍ ମୋ କଥା, ମାନ୍।"

ଦୁଲ୍ ଦୁଲ୍ ହୋଇ ଦୁଲ୍‌କି ଉଠିଲା ଭୂଇଁଟା! କଦମ୍ ପକାଇ ଚମକି ଆସିଲା ଘୋଡ଼ା। ସୁଉ ସୁଉ ହୋଇ ନିଃଶ୍ୱାସରେ ତାର ନାକପୁଡ଼ାରୁ ବାହାରୁଥାଏ ଧୂଆଁ। ଆଉ, ହୁଉ ହୁଉ ହୋଇ କିଆଁ ହୁଳା ଛୁଟି ଆସୁଥାଏ କାନ ଭିତରୁ! ଦୁମ୍‌କିନି ଆସି ଛିଡ଼ା ହୋଇ ପଡ଼ିଲା ପଥରଟାଏ ପରି, ଇଭାନ୍ ଆଗରେ।

ଇଭାନ୍ ଘୁରୁଣ୍ଡି ଘୁରୁଣ୍ଡି ତାର ଡାହାଣ କାନରେ ପଶି ବାଆଁ କାନବାଟେ ବାହାରି ପଡ଼ିଲା ପଦାକୁ—ପାଲଟିଗଲା ଡଉଲଡାଉଲ ସୁନ୍ଦର ଯୁବାଟିଏ।

କସରୀ ଘୋଡ଼ାରେ ଚଢ଼ି ତାକୁ ଝପଟେଇ ଦେଲା ନଅରକୁ। ସେଠି ଯାଇ ଦେଖିଲା, ଆଗ ଦିନଠୁ ବଳି ଆହୁରି ବେଶି ଲୋକ, ଆହୁରି ଗହଳି। ସମସ୍ତେ ଏକଲୟରେ ଅନେଇ ରହିଛନ୍ତି ରାଜା ଝିଅକୁ, କେହି କିନ୍ତୁ ସାହାସ କରୁ ନାହାନ୍ତି କୁଦା ମାରି ରାଜଝିଅ ଯାଏଁ ଉପରକୁ ଉଠିଯିବାକୁ। ସମସ୍ତଙ୍କର ଡର—କାଳେ ହାତଗୋଡ କି ବେକଫେକ ଭାଙ୍ଗି ଚୂନା ହୋଇଯିବ।





ଇଭନ୍ ଟୋପିଟିରେ ଜୋଝିଦେଲା କସରା ଘୋଡ଼ାର କଂକାଳକୁ । ହିଁ ହିଁ ରଡ଼ିଟାଏ ଛାଡ଼ିଲା ଘୋଡ଼ା, କୁଦାଟାଏ ମାରିଦେଲା ଉପରକୁ । କିନ୍ତୁ ମୁଣ୍ଡଟା ତାର ବାଜିଲା ରାଜଝିଅ ଝରକାତଳେ, ଦ୍ୱିତୀୟ ଟେବଢ଼ ପଟାରେ ଠିକ୍ । ଝଟ୍କାନ କସରା ଘୋଡ଼ାକୁ ବୁଲେଇ ଦେଇ ଚମ୍ପଟ୍ ଦେଲା ଇଭାନ୍ । ସମସ୍ତେ ଅନେଇଥାନ୍ତି, କିନ୍ତୁ କେହି ଦେଖି ପାରିଲେ ନାହିଁ, କେଉଁ ବାଟରେ କୁଆଡେ ପଳେଇଗଲା ସେ ।

ଖୋଲା ପଡ଼ିଆକୁ ଫେରି କଅଁରା ଘୋଡ଼ାକୁ ବିଦା କରି ଦେଲେ ଇଭାନ୍, ବଣରୁ ଟୋକେଇଏ କାଠଛତୁ ତୋଳିଧରି ଫେରିଲା ଘରକୁ। ଭାଇମାନେ ଛତୁଗୁଡ଼ାକୁ ଦେଖି ଗାଳିଦେଇ କହିଉଠିଲେ, "କେଡ଼େ ବୋକାଟାଏ ରେ ତୁ ! ଏଏ କି ଛତୁ ଆଣିଛୁ ! ତୋ' ଛଡ଼ା କିଏ ଆଉ ଏଗୁଡ଼ାକୁ ଛୁଇଁବ ଭଲା, କହ ରେ ?"

ଇଭାନ୍ ମୁରୁକେଇ ହସିଦେଲା, ନିଆଁ ପାଖରେ ଯାଇ ବସିଲା। ଭାଇମାନେ ସହର ହାଟରୁ ଫେରିଆସିଲେ ସେଦିନ; ଭାଇମାନଙ୍କୁ କହିଲେ—"ଶୁଣିଲ, ଆଜି ତ ଆସିଥିଲା ସେଇ ଚଢ଼ିଆ ବୋକାଟା ! ରାଜଝିଅର ଝରୋକାର ଦ୍ୱିତୀୟ ଚଉଡ଼ପଟା ଯାଏଁ ଡେଇଁଲା ସେ !"

ଇଭାନ୍ କହିଲା, "ଭାଇ ! ଠିକ୍ କହୁଛ ତ, ମତେ ଆଉ ଦେଖିନ ସେଠି ?"

"ଚୁପ୍ କର ! ବସ୍, ଯୋଉଠି ବସିଛୁ, ବସ୍।"

ତହିଁ ଆରଦିନ ରଜା ଦୂତ ପଠାଇଲେ ଗାଁରଆଡ଼କୁ। ବଡ଼ ଦୁଇଭାଇ ସଜ ହେଉଥାନ୍ତି ଯିବାକୁ। ଇଭାନ୍ ପୁଣି ନାକେଇ ପାକେଇ ହୋଇ କହିଲା, "ଭାଇ, ମତେ ପୁରୁଣାକାଳିଆ ନେଇ ପଞ୍ଚ ମଡ଼ିଆ ଘୋଡ଼ାଟିଏ ଦିଅନ୍ତ କି, ମୁଁ ବି ଟିକେ ଯାଆନ୍ତି ତମ ସାଙ୍ଗରେ !"

"ଯାଃ, ଘରେ ବସ୍ !" ଭାଇ ଦୁହେଁ ପାଟି କରି ଉଠିଲେ, "କିଏ ତତେ ପଚାରିବ ରେ ସେଠି ?" —ଏତିକି କହି ବାହାରିଗଲେ ସେମାନେ !

ଆଉ, ଖୋଲା ପଡ଼ିଆକୁ ବାହାରି ପଡ଼ିଲା ଇଭାନ୍ ! ମୁହଁରେ ଆଙ୍ଗୁଠି ଦେଇ ସୁଇଁର ଡାକ ଡାକ ମାରିଲା, "ଆ, ଆ ରେ କଅଁରା ଘୋଡ଼ା ଆ ! ଆ, ଶୁଣ୍ ମୋ କଥା ମାନ୍ !"

ଦୁଲୁ ଦୁଲୁ ହୋଇ କମ୍ପି ଉଠିଲା ଭୂଇଁଟା, କଦମ୍ ପକାଇ ଚମକି ଆସିଲା ଘୋଡ଼ା। ଧୁଉ ଧୁଉ ହୋଇ ନିଃଶ୍ୱାସରେ ତାର ନାକପୁଡ଼ାରୁ ବାହାରୁଥାଏ ନିଆଁ; ହୁଉ ହୁଉ ହୋଇ ନିଆଁହୁଳା ଛୁଟି ଆସୁଥାଏ କାନ ଭିତରୁ ! ଦୁମ୍ କିନା ଆସି ଛିଡ଼ା ହୋଇଗଲା ପଥର ପରି, ଇଭାନ୍‌ର ଆଗରେ !

ଇଭାନ୍ ଗୁରୁଣ୍ଡି ଗୁରୁଣ୍ଡି ତା' ଡାହାଣ କାନରେ ପଶି ବାଆଁ କାନ ବାଟେ ବାହାରିଲା ପଦାକୁ, ଆଉ ପାଲଟିଗଲା ଡଉଲଡାଉଲ ସୁନ୍ଦର ନବାଟିଏ !



କସରା ଘୋଡ଼ା ଉପରେ ଚଢ଼ିଯାଇ ଇଭାନ୍ ତାକୁ ଝପଟେଇ ଦେଲା ନଅର ଆଡ଼େ ।

ଜଟାଉ ଉପରକୁ ଉଠିବାକୁ ଟଳା ଯେତେବେଳେ, ଥିଲା ଥିଲା ଦ'ଗ୍ବର ଚାବୁକ୍ କଷିଦେଲା ଘୋଡ଼ାକୁ । ଗୋଟାଏ ହାଁହାଁଆ ରଡ଼ି ଛାଡ଼ି, ଭୂଇଁରେ ଖୁରା ପିଟି, ଘୋଡ଼ାଟା ଆକାଶିଆ କୁଦା ମାରିଲା ଉପରକୁ ଆଉ ପହଞ୍ଚିଗଲା ଝରକା ପାଖରେ ।

କେତେ ସୁନ୍ଦର ଗୋଲାପୀ ଓଠ ଦଓଟି ରାଜାଝିଅର ! ଥିର୍‌କିନ ତାକୁ ଚେଲ କଲା ଟିକେ ଇଭାନ୍, ଆଙ୍ଗୁଠିରୁ କାଢ଼ି ଆଣିଲା ରତ୍ନ ମୁଦଟି । ତା'ପରେ ଘୋଡ଼ାକୁ ବୁଲେଇ ଦେଲା, କଦମ୍ ଛୁଟେଇ ଚମ୍ପଟ୍ ଦେଲା ଗ୍ରାହାଁ ଗ୍ରାହାଁ ।

ଲୋକେ ପାଟି କରି ଉଠିଲେ—"ଧର ତାକୁ ! ଧରପକା ତାକୁ !" କିନ୍ତୁ ସେତେ-ବେଳକୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ଇଭାନ୍ ! କେହି କୋଉଠି ତାର ଗନ୍ଧବର୍ଣ୍ଣ ଦେଖିବାକୁ ପାଇଲେ ନାହିଁ । କସରା ଘୋଡ଼ାକୁ ଛଡ଼ା କରି ଦେଇ ସେ ଘରକୁ ଫେରିଲା । ଚଗ୍ଲ କନାଖଣ୍ଡେ ତାର ଗୋଟିଏ ହାତରେ ଗୁଡ଼ାହୋଇଥାଏ ।

ଭାଇମାନେ ପଚାରିଲେ—"ହାତ କଣ ହେଲା କି ରେ ତୋର ?"

"ଛତୁ ଖୋଜୁଥିଲି ଯେ କଣ୍ଟାଟାଏ ଗଳିଗଲା କେମିତି ।" ଏତକ କହି ଚୁଲିମୁଣ୍ଡ ଆଟୁ ଉପରକୁ ଉଠିଗଲା ଇଭାନ୍ !

ଅଳ୍ପ ସମୟ ପରେ ଭାଇମାନେ ଫେରିଲେ ; ସହରରେ ଯାହା ସବୁ ଦେଖିଥିଲେ ନିଜ ନିଜ ଘରଯାମାନଙ୍କୁ କହିଲେ—"ବୁଝିଲ ! ଏଥର ହେଇ ବଢ଼ିଆ ଟୋକାଟା ମ, ସିଧାକୁ ସିଧା ପହଞ୍ଚିଗଲା ରାଜାଝିଅର ଝରକାପାଖରେ । ତାକୁ ଚେଲକଲା ଆଉ ତା' ଆଙ୍ଗୁଠିରୁ ମୁଦଟି କାଢ଼ି ନେଲା ମ !"

ପଛରୁ ଡାକିଲା ଇଭାନ୍, "ଭାଇ ! ଟିକ୍ ଜୀବନ୍ତ ତ ? ମତେ ତ ଆଉ ଦେଖିନ ସେଠି ?

"ଚୁପ୍ କର ବୋକା ! ଉପରେ ପଡ଼ି କହି ହେଉଛ ପୁଣି ।"







ଇଭାନ୍‌ର ମନ ହେଲା, ରାଜାଝିଅର ମୁଦିଟିକୁ ଟିକେ ଦେଖନ୍ତା କି ! ଡର୍ କନାକୁ ଫିଟେଇଲା ହାତରୁ । ମୁଦିରେ ବସିଥିବା ପଥରଟି ଏମିତି ଝଲସି ଉଠିଲା ଯେ ହାଲୋଳ କରି ଦେଲା ଘରଟାକୁ ।

"ଏଓ, ନିଆଁରେ କି ଖେଳ ରେ ! ବନ୍ଦ କର ଓଲୁ !" ଭାଇ ଦୁହେଁ ପାଟିକରି ଉଠିଲେ, "ଘରଦ୍ୱାର ପୋଡ଼ିବୁ ନା କଣ ? ଏଣିକି ତତେ ଘରୁ ନିକାଲି ନ ଦେଲେ ଚଳିବ ନାହିଁ, ଦେଖୁଚୁ ।"

ଊଁ ଚୁଁ ପାଟି ଫିଟେଇଲା ନାହିଁ ଇଭାନ୍ । ଓଲଟି କନାଟିକୁ ଗୁଡ଼େଇ ଦେଲା ପୁଣି ହାତରେ ।

ଗୋଟି ଗୋଟି ହୋଇ ଅନେକଟି ଦିନ ଗଡ଼ିଗଲା । ପୁଣି ଥରେ ରାଜା ଦୂତ ପଠାଇଲେ ଚାଷୀଆଡ଼କୁ, ରାଇଜଯାକର ସମସ୍ତଙ୍କୁ ଡକେଇଲେ ଗୋଟାଏ ମସ୍ତ ବଡ଼ ଭୋଜିକୁ ; ଜଣେଇ ଦେଲେ, 'ପ୍ରଜାପାଟକଙ୍କ ଭିତରୁ କେହି ଜଣେ ଭୋଜିକୁ ନ ଆସି ଘରେ ରହିପାରିବ ନାହିଁ । ଏ କଥା ଯିଏ ଅମାନ୍ୟ କରିବ, ତାର ମୁଣ୍ଡ କାଟି ହେବ ।'

ଭାଇମାନେ ଆଉ କରନ୍ତେ କଅଣ ! ବାଧ୍ୟ ହୋଇ ଓଲୁ ଇଭାନ୍‌କୁ ସାଙ୍ଗରେ ନେଲେ, ବାହାରିଲେ ଭୋଜିକୁ ।



ସ୍ୱଇନପାଜର ସବଚେୟେ ଭୋଜ ହୋଇଥାନ୍ତି ରାଜଦରବାରରେ! ଭାଇମାନେ ଯାଇଁ ପହଞ୍ଚିଗଲେ । ସରୁ ସରୁ କମକୁଟର ରେଶମୀ ଓଢ଼ଣୀରେ ଢଙ୍କା ହୋଇଥାଏ ଓକ୍‌କାଠର ଟେବୁଲ୍ ଉପରେ । ସେଇ ଟେବୁଲ ପାଖରେ ସେମାନେ ବସିଲେ । ଖାଇପିଇ ମାତିଗଲେ ଉପରେ । ଇଭାନ୍ ବସିଥାଏ ଚୁଲି ଆଢ଼ୁଆଳରେ, ଗୋଟିଏ କଣରେ ।

ସୁନ୍ଦରୀ ଏଲିନା ଅତିଥିମାନଙ୍କୁ ଚର୍ଚ୍ଚା କରିବାରେ ଲାଗିଲେ । ସେ ଜଣ ଜଣ କରି ସମସ୍ତଙ୍କ ପାଖକୁ ଗଲେ । କାହାକୁ ଅଙ୍ଗୁର ରସ, କାହାକୁ ମହୁପଣା, କାହାକୁ ବା ସର୍ବତ୍ ଯାଚିଲେ । ଗୋଟି ଗୋଟି କରି ପ୍ରତ୍ୟେକଙ୍କ ଆଗରେ ଛିଡ଼ା ହୋଇ ନିରେଖି ନିରେଖି ଦେଖିଲେ କିଏ ତାର ସେଇ ରତ୍ନ ମୁଦ୍ରିକା ପିନ୍ଧିଛି—କାହିଁକି ନା, ଯିଏ ପିନ୍ଧିଥିବ, ତାଙ୍କୁ ହିଁ ସେ ବାହା ହେବ । —ନାଃ, କୋଉଠି ହେଲେ କାହାରିଠି ଦେଖିଲେ ନାହିଁ ରତ୍ନ ମୁଦ୍ରିକା ।

ଅତିଥିମାନଙ୍କୁ ଚର୍ଚ୍ଚା କରି କରି କେତେ ଥର ବୁଲି ଆସିଲେ ପରେ ତାର ଆଖି ପଡ଼ିଗଲା ଇଭାନ୍ ଉପରେ, ଅଟେଇଗଲା ତା ଆଡ଼କୁ ! ଦେହରେ ଛିଣ୍ଡା ମଇଳା ପୋଷାକ, ହାତରେ କନାଖଣ୍ଡେ ଗୁଡ଼େଇ ଭୁଷ ହୋଇ ବସିଥାଏ ଇଭାନ ।

ଭାଇମାନେ ତାକୁ ଅନେଇ ଦେଲେ, କହିଲେ, "ଏଃ ! ଦେଖ ହୋ ! ଓଲୁ ଇଭାନ୍‌ଟାକୁ ମଧ୍ୟ ଆଜ ସରବତ ଖାଇବାକୁ ଯାଉଛି ରାଜଝିଅ !"

ରାଜାଝିଅ ସରବତ୍ ଗିଲାସେ ବଢ଼େଇ ଦେଲା ଇଭାନ୍ ହାତକୁ ; ପଚାରିଲା ;

"ତମ ହାତରେ ପଟି ବନ୍ଧା ହୋଇଛି କାହିଁକି ?"

"ବଣରେ ଛତୁ ତୋଳୁଥିଲି ଯେ କଣ୍ଟା ଫୋଡ଼ି ହୋଇଯାଇଛି ହାତରେ।"

"କନାଟା ଫିଟେଇ ହାତଟି ଟିକେ ଦେଖେଇଲ ମତେ !"

ରାଜାଝିଅ କଥାରେ କନାଟି ଫିଟେଇ ଦେଲା ଇଭାନ୍ ! ହେଇ ରେ ହେଇ ! ତା ହାତରେ ରତ୍ନ ମୁଦଟା ! —ଝଲସି ଉଠି ହାଲୋଳ କରିଦେଲା ଉଆସକୁ !

ରାଜାଝିଅର ଖୁସି ଦେଖେ କିଏ ! ଇଭାନ୍‌ର ହାତଟି ଧରି ତାକୁ ଟାଣି ନେଇଗଲା ସେ ରାଜାଙ୍କ ପାଖକୁ ; କହିଲା—"ହେଇ, ବାପା ! ଏଇ ମୋର ସ୍ୱାମୀ !"

ଧୁଆଧୋଇ ହୋଇ ପୋଷାକପତ୍ର ବଦଳେଇଲା ଇଭାନ୍ ! ଆଉ କଣ ଓଲୁ ଇଭାନ୍ ହୋଇ ରହିଲା ସେ ? ସମସ୍ତଙ୍କୁ ବଳି ଡଉଲଡାଉଲ କେଡ଼େ ସୁନ୍ଦର ଯୁବାଟିଏ ପାଲଟିଗଲା ସେ ।

ଆଉ ମୁହୂର୍ତ୍ତେ ବି କଥାବାର୍ତ୍ତାରେ ନଷ୍ଟ ନ କରି ସମସ୍ତେ ଲାଗିପଡ଼ିଲେ ବାହାଘର କାମରେ । ଢୋଲ ପେଏଁକାଳିରେ, ଗାଉଣାବାଜଣାରେ, ଉଛୁଳି ପଡ଼ିଲା ନଅରଟା । ଯିଏ ଯୁଆଡ଼େ ଥିଲେ ସମସ୍ତେ ମଜ୍ଜିଗଲେ ମଉଛାରେ ।

ମୁଁ ବି ଥିଲି ସେଠି, କେତେ ସରବତ୍, କେତେ ମହୁ ପିଇଲି ମୁଁ,—କେଡ଼େ ମଉଜରେ ସମୟଟା କଟେଇ ଦେଲି ପୁଣି ।

